# ହରି ଅର୍ଜ୍ଜୁନ ଚଉତିଶା

( ନୂତନ ମୁଦ୍ରଣ )



ମୂଲ୍ୟ : ଏକ ଟଙ୍କା ମାତ୍ର

# ହରି ଅର୍ଜୁନ ଚଉତିଶା

କରଯୋଡ଼ି କହେ ପାର୍ଥ ଶ୍ରୀକୃଷ୍ଣ ଛାମୁର,
କହ କଳିଯୁଗ ଗତି କମଳାର ବର ହେ ।
କି ପ୍ରକାର, କଳିଯୁଗେ ନାଶ ହେବେ ନର ହେ ।୧।

ଖଗପତିଙ୍କ ପ୍ରଭୁର ଏସନ ବଚନ,
ଖିଆଲ ନୁହେଁଟି ଯାହା ପୃଚ୍ଛିଲ ଅର୍ଜୁନ ହେ ।
ଷଣେ ଶୁଣ, କହିବା ଆଗତ କଥାମାନ ହେ ।୨।

ଗୁରୁ ଗଉରବ କଳିଯୁଗେ ନ ମାନିବେ,
ଗୃହସ୍ଥଙ୍କୁ ନାରୀମାନେ ପାଦେ ଗଣ୍ଠାଇବେ ।
ଗେଲ ଗର୍ବେ, ଗୃହେ ଅନ୍ୟ ପୁରୁଷେ ରମିବେ ହେ ।୩।

ଘୋର କଳିଯୁଗେ କାହା ଜ୍ଞାନ ନ ରହିବ
ଘରେ ଘରେ ମିଥ୍ୟାବାଦ କଳି ଉପୁଜିବ ହେ ।
ଘୋଷା ହେବେ, ଘୋର ପାପେ ସର୍ବେ ନାଶ ଯିବେ ହେ ।୪।

ଉତ୍ତମ ଲୋକଙ୍କ ସଙ୍ଗେ ହଙ୍ଗ ଯେ ନୋଷ୍କବେ
ଉପହାସ କରି ମୋ ଭକ୍ତଙ୍କୁ ଗାଳିଦେବ ହେ ।
ଏହ୍ନ ଭାବେ, ଅଳ୍ପାୟୁଷ କଳିଯୁଗେ ହେବେ ହେ ।୫।

ଚଷିବେ ଗୋଚର ଦଣ୍ଡା ନ ମାନିବେ କେହୁ,
ଚଣ୍ଡୀ ଯେ ବ୍ରହ୍ମଣ୍ଡା ଗ୍ରାମେ ଗ୍ରାମେ ଯିବେ ଖାଇ ହେ ।
ଚମକାଇ, ଚର୍ଣ୍ଣ ଇଣ ଝାଇବେ ଚୋଙ୍ଗାଇ ହେ ।୬।

ଛୁଡ଼ିବେ ସକଳ ତୀର୍ଥ ପାପେ ଧନ ନେବେ
ଛଳ କପଟରେ ନିତି କୁଟୁମ୍ବ ପାଳିବେ ହେ ।
ଛନ୍ନ ହେବେ, ଛାଡ଼ି ଦୟା ଧର୍ମପଥ ସର୍ବେ ହେ ।୭।

ଜଳ ନ ବରଷି ମେଘ ଉଠାଇ ଆସିବ,
ଜାଣିଥା ଅର୍ଜୁନ ମୋର ଏ ବଚନ ଧ୍ରୁବ ହେ ।
ଜଳସ୍ଥାନ, ଜଳିଯିବ କୃଷି ଆଦ୍ୟ ଧାନ୍ୟ ହେ ।୮।
ଝାଡ଼ ବାଡ଼ ଖଣ୍ଡି ପ୍ରଜା କୃଷି ଆରମ୍ଭିବେ,
ଝଗଡ଼ା କରଣ ରାଜା ବସିଣ କଣବେ ହେ ।
ଝୁରୁଥିବେ, ଝୁରି ଝୁରି ସର୍ବେ ନାଶ ଯିବେ ହେ ।୯।
ନାନା ଉପଦ୍ରବ ହେବ ଏ ମହୀ ମଣ୍ଡଳେ,
ନ ମାନିବେ ବଡ଼ ସାନ କଳିଯୁଗ ନରେ ହେ ।
ନଷ୍ଟେ ଠୂଳ, ନାଶ ହେବେ ଏ ମହୀମଣ୍ଡଳେ ହେ ।୧୦।
ଟାଣ ନ କରିବ କାରି ହେବ ଅଣାପୁତ୍ରେ,
ଟଳି ପଡ଼ୁଥିବେ ଦେଖୁ ଦେଖୁ ଆଚମ୍ବିତେ ହେ ।
ଟାହି ଗୀତ, ଟିକଏ ନମଣ ପଣ୍ଡ୍ରି ସୂତ ହେ ।୧୧।
ଠାକୁର ବୋଲି ଆମ୍ଭଙ୍କୁ କେହି ନ ମାନିବେ,
ଠାବେ ଠାଓବ ଦେବା-ଦେବୀ ଅପୂଜା ରହିବେ ହେ ।
ଠକଦେବେ, ଠିକବେଳେ ସର୍ବେ ନାଶଯିବେ ହେ ।୧୨।
ଡାଏଣି ଡାକୁଣୀଗଣ ଉତ୍ପାତ ହୋଇବେ,
ଡାକ ହାକ କରି ଗ୍ରାମେ ଗ୍ରାମେ ବୁଲୁଥିବେ ହେ ।
ଡରାଇବେ, ଡକା ପଡ଼ିଯିବ ସର୍ବ ଠାବେ ହେ ।୧୩।
ଢାଳେ ହେ କାହାର ବୁଦ୍ଧି ଜ୍ଞାନ ନ ରହିବ,
ଢ଼ମ ଛଣ କହିବାରୁ ନାଶ ହେବେ ସର୍ବ ହେ ।
ଢାଳେ ଦେବ, ଢାଉଁ ଢାଉଁ ଜଗତେ ଶୁଭିବ ହେ ।୧୪।
ଆପଣା ଅର୍ଜିଲ କଥା ଆପଣାକୁ ସଲ,
ଆଗେ ତାହା ବୁଝିବାକୁ ନୁହ କଲବଲ ହେ ।
ଅଟେ ଫଳ, ଅମଙ୍ଗଳ ଅଟେ କଳିକାଳ ହେ ।୧୫।

ତୀର୍ଥ ବ୍ରତ ଦୟା ଧର୍ମ ସବୁ କରି ଦୂର
ତାଳ ତର୍କେ ଦିନ ନେବେ କଳିଯୁଗ ନର ହେ ।
ତୋ ଆଗର, ତଥ୍ୟ କହୁଅଛି ପଣ୍ଡୁ ବୀର ହେ ।୧୬।
ଥୟ ନ ରହିବ ଯେ କାହାରି ଜ୍ଞାନ ବୁଦ୍ଧି
ଥିରପଣେ ଜଣେ କେହି ନୋହିବେ ସୁବୁଦ୍ଧି ହେ ।
ଥିଲବାଧା, ଥିବେ କୁକର୍ମକୁ କରି ସିଦ୍ଧି ହେ ।୧୭।
ଦେଢଶୁର ଭାଇବୋହୂ ନଥିବ କାରଣ
ଦେଠାଇ ଶୁଙ୍ଘାଇ ଆଦି ହରିବେଟି ଜାଣ ହେ ।
ଦୁଷ୍ଟଗଣ, ଦିବସରେ କରିବେ ରମଣ ହେ ।୧୮।
ଧର୍ମ ଅଧର୍ମ ବିଚାର ନ ଥିବ କାହାର
ଧରଣୀ ବହିବ ସିନା ହୋଇ ହତଶିରୀ ହେ ।
ଅଂଶେ ସାର, ଧନଞ୍ଜୟ କହନ୍ତି ବିଚାର ହେ ।୧୯।
ନ ମାନିବେ କୁଳବଧୂ ଶାଶୂ ଶ୍ୱଶୁରଙ୍କୁ
ନ ମାନିବେ ପୋଏ ମାତା ପିତାଙ୍କ ବୋଲକୁ ହେ ।
ନିଷେଧକୁ, ନାଶିଏ ତେଜିବେ ଗୃହସ୍ଥଙ୍କୁ ହେ ।୨୦।
ପର ଧନ ଲୁଟିକରି ବୋହି ନେଉଥିବେ
ପରଜା ଗୁହାରି କଲେ ରଜା ନ ଶୁଣିବେ ହେ ।
ପଳାଇବେ, ପଥଭ୍ରଷ୍ଟ ଅପଥେ ଗମିବେ ହେ ।୨୧।
ଫନ୍ଦା କରିଥିବା କୃଷି ବୋହିନେବେ ଆନ
ଫନ୍ଦା ଫିକର କରିଣ ବଞ୍ଚିଥିବେ ଜନ ହେ ।
ଫଠମାନ, ଫାନ୍ଦ ଫାନ୍ଦି ଥିବେ ସବୁ ଜନ ହେ ।୨୨।
ବ୍ରାହ୍ମଣେ ଗାୟତ୍ରୀ ଛାଡ଼ି ଗାରେଡ଼ି ପଢ଼ିବେ
ବେଦ ବିଦ୍ୟା ଭ୍ରମେ ଗ୍ରାମେ ବୁଲିଣ ବିକିବେ ହେ ।
ବଣାହେବେ, ବିପ୍ରମାନେ ସନ୍ଧ୍ୟାକୁ ତେଜିବେ ହେ ।୨୩।

ଭାରତର ହେବ ପୃଥ୍ୱୀ ନ ପାଳିବ ସତ୍ତ
ଭୂମିକମ୍ପ ହେବ କଷ୍ଟେ ଜାଣିଥାଅ ଭୁଜ ହେ ।
ଖଣ୍ଡବଳ, ଭୂମି ମନୁଷ୍ୟଜନ୍ମ ସର୍ବନର ହେ । ୨୪ ।
ମରୁଡ଼ି ହୋଇବ ଇନ୍ଦ୍ର ବୃଷ୍ଟି ନ କରିବ
ମହାନଦୀ ଜଳ କଷ୍ଟେ ଉଠିଣ ଆସିବ ହେ ।
ମିଥ୍ୟାଭାବ, ମଣୁଷ ନ ଏ କଥା ପାର୍ଥିବ ହେ । ୨୫ ।
ଯେତେବେଳେ ନୀଳାଚଳ ଛାଡ଼ିକରି ଯିବୁ
ଯାଜପୁର ବିପ୍ରଘରେ ଯାଇ ଜନମିବୁ ହେ ।
ଜଗିଥିବୁ, ଯେ ଯେତେ କହିଲେ ନ ଶୁଣିବୁ ହେ । ୨୬ ।
ରାଜା ହୋଇ ରାଜ୍ୟ କେହି ଜଣେ ନ ରହିବେ
ରାଜେଶ୍ୱର ଫିରିଙ୍ଗି ଯେ ଅଙ୍କ କଟାଇବେ ହେ ।
ଏହିଭାବେ, ରାଜାପ୍ରଜା କରି ଏକଠାବେ ହେ । ୨୭ ।
ନୀଳାଚଳ ଛାଡ଼ି ଆମ୍ଭେ ଯିବୁ ଯେତେବେଳେ
ଲଗିବ ରନ୍ଧ ବୃନ୍ଦ୍ରା ଅଗ୍ନି ତେତେବେଳେ ହେ ।
ନଣାକାଳେ, ନୀଳାଚଳୁ ବେଶିଯିବ ଝେକଳେ ହେ । ୨୮ ।
ବଡ଼ ଦେଉଳରୁ ମୋର ଖସିବ ପଥର
ବସିବ ଯେ ଗଧ୍ର ପକ୍ଷୀ ଅରୁଣ ସ୍ତମ୍ଭର ହେ ।
ବତାସର, ବନ୍ଧହେବ ନୀଳଚକ୍ର ମୋର ହେ । ୨୯ ।
ସତ୍ୟକଥା ସତ୍ୟକଥା ଅଟଇ ଅର୍ଜୁନ,
ଜାଣିଥା ଅର୍ଜୁନ ଏ ମୋ ଶ୍ରୀମୁଖ ବଚନ ହେ ।
ସତ୍ୟକରି, ଶ୍ରୀମୁଖ ବଚନ ଏ ମୋହର ହେ । ୩୦ ।
ସପ୍ତଧନ ପଞ୍ଚଯନ୍ତ୍ରେ ହେବ ଏହି ଭାବ,
ଶୂନ୍ୟେ ଧନମଣି ଥିବ ଦୃଶ୍ୟ ତା' ନୋହିବ ହେ ।
ସତ୍ୟଭାବେ, ଶେଷହେବ କଳିଯୁଗ ତେବେ ହେ । ୩୧ ।

ସମୁଦ୍ର ଉଠି ଆସିବ ବତାସ ବହିବ,
କଳପବଟ ମୋହର ଶୃଙ୍ଗି ପକାଇବ ହେ ।
ସତ୍ୟଭାବ, ସାଲ ଉନଶତ ଜର ଠାବ ହେ । ୩୨ ।

ହସିକରି କହୁଛନ୍ତି ଅଖିଳ ଗୋସାଇଁ,
ହେଉ କଣଥିବୁ ପାର୍ଥ ନ କହିବୁ କାହିଁ ହେ ।
ହସ୍ତେ ଭୁଞ୍ଜ, ଥାଅ ମୋର ପାଦପଦ୍ମ ଛୁଇ ହେ । ୩୩ ।

ଖଗପତି ନାଥ କହି ଏସନ ବଚନ,
ଖିଆଲ ନୁହେଁ ଟି ଯାହା କହିଲ ଅର୍ଜ୍ଜୁନ ହେ ।
ଷମେ ଶୁଣ, ଷମେ ଜନ ମାଗଇ ଶରଣ ହେ । ୩୪ ।

—o—

## ପ୍ରାତଃକ୍ରିୟା ନିତ୍ୟକର୍ମ

(ପ୍ରଭାତରେ ଶଯ୍ୟୋତ୍ଥାନାନ୍ତର ସ୍ମରଣୀୟ)

ବ୍ରହ୍ମା ମୁରାରି ସ୍ତ୍ରିପୁରାନ୍ତକାରୀ ଭାନୁଃ ଶଶୀ ଭୂମିସୁତୋ ବୁଧଶ୍ଚ
ଗୁରୁଶ୍ଚ ଶୁକ୍ରଶନି ରାହୁକେତୁବଃ କୁର୍ବନ୍ତୁ ସର୍ବେ ମମ ସୁପ୍ରଭାତଂ
ପ୍ରଭାତେ ଯଃ ସ୍ମରେନ୍ନିତ୍ୟଂ ଦୁର୍ଗା ଦୁର୍ଗାକ୍ଷରଦ୍ୱୟଂ ।
ଆପଦସ୍ତସ୍ୟ ନଶ୍ୟନ୍ତି ତମଃ ସୂର୍ଯ୍ୟୋଦୟେ ଯଥା ॥
ଅହଲ୍ୟା ଦ୍ରୌପଦୀ ତାରା କୁନ୍ତୀ ମନ୍ଦୋଦରୀ ତଥା ॥
ପଞ୍ଚକନ୍ୟା ସ୍ମରେନ୍ନିତ୍ୟଂ ମହା ପାତକ ନାଶନଂ ॥
ପୁଣ୍ୟ ଶ୍ଳୋକ ନଳରାଜା ପୁଣ୍ୟଶ୍ଳୋକ ଯୁଧିଷ୍ଠିରଃ ।
ପୁଣ୍ୟଶ୍ଳୋକ ଚ ବୈଦେହୀ ପୁଣ୍ୟଶ୍ଳୋକ ଜନାର୍ଦ୍ଦନ ॥
ବ୍ୟାସୋ ବଶିଷ୍ଠ ବଳବାମନକାମନେବାଃ ।
ବ୍ରହ୍ମା ବରାହ ବାସୁକି ବୈନତେୟାଃ ॥

ବୈଶ୍ବାନରେ ବରୁଣବାସବ ଲୋକପାଳାଃ ।
ସ୍ୱପ୍ନେ ହରନ୍ତୁ ଦୁରିତଂ ମମ ସୁପ୍ରଭାତେ ॥
ଆପଦ ମମ ହର୍ତ୍ତାରଂ ଦାତାରଂ ସର୍ବ ସମ୍ପଦଂ ॥
ଲୋକାଭିରାମ ଶ୍ରୀରାମ ଭୂୟୋ ନମାମ୍ୟହଂ ॥
ଅଶ୍ୱତ୍ଥାମା ବଳି ବ୍ୟାସୋ ହନୁମାନଂଶ୍ଚ ବିଭୀଷଣଃ ।
କୃପ ପରଶୁରାମଶ୍ଚ ସପ୍ତୈତେ ଚିରଜୀବିନଃ ॥
ସପ୍ତୈତାନ ଯଃ ସ୍ମରେନ୍ନିତ୍ୟଂ ମାର୍କଣ୍ଡେୟମଥାଷ୍ଟମଂ ।
ଜୀବେଦ୍ ବର୍ଷଶତଂ ସାଗ୍ରଂ ସର୍ବବ୍ୟାଧିବିବର୍ଜ୍ଜିତଃ ॥
ଅଯୋଧ୍ୟା ମଥୁରା କାଶୀ ମାୟା କାଞ୍ଚିରବନ୍ତିକା ।
ପୁରୀ ଦ୍ୱାରାବତୀ ଚୈବ ସପ୍ତୈତେ ମୋକ୍ଷଦାୟିକାଃ ॥
ପ୍ରଭାତେ ଶ୍ରୀଗୁରୁଂ ଧ୍ୟାୟେତ୍ ସର୍ବପାପ ପ୍ରଣାଶନଂ ॥
ଶାନ୍ତଂ ସର୍ବଗୁଣାଧାରଂ ମୋକ୍ଷମାର୍ଗ ପ୍ରଦର୍ଶକଂ ॥
ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁ ଗୁରୁଦେବ ମହେଶ୍ବର ।
ଗୁରୁଃ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈ ଶ୍ରୀ ଗୁରୁବେ ନମଃ ॥

—o—

## ଦାନ୍ତକାଠି ନିରୂପଣ

ଦ୍ୱାଦଶାଙ୍ଗୁଳଂ ବିପ୍ରାଣାଂ କ୍ଷତ୍ରିୟାଣାଂ ଦଶାଙ୍ଗୁଳଂ ।
ଅଷ୍ଟାଙ୍ଗୁଳଂ ତୁ ବୈଶ୍ୟାନାଂ ଶୁଦ୍ରାଣାଞ୍ଚ ଷଡାଙ୍ଗୁଳଂ ॥
କ୍ଷୀରକଣ୍ଟକସଂଯୁକ୍ତଂ ଚ କଷାୟଂ ଚୈବ ବର୍ଜ୍ଜିତଂ ।
ସ ତର୍ମରସସଂଯୁକ୍ତଂ ଚ ଦନ୍ତଧାବନକର୍ମଣି ।

## ମୃତ୍ତିକା ପ୍ରାର୍ଥନା

ତ୍ୱଂ ଧରେ ସର୍ବଭୂତାନାଂ କ୍ଷମାଯୁକ୍ତାସି ନିତ୍ୟଶଃ ।
ସର୍ବକର୍ମ କରିଷ୍ୟାମି ମୃତ୍ତିକା ଦେହି ମେ ମହୀ ॥

## ସ୍ନାନର ପୂର୍ବପାଠ୍ୟ

ଅଶ୍ୱକ୍ରାନ୍ତେ ବିଷ୍ଣୁକ୍ରାନ୍ତେ ବସୁନ୍ଧରେ
ମୃତ୍ତିକେ ହରମେ ସର୍ବଂ ଜନ୍ମାସ୍ତୁ ଦୁଷ୍କୃତଂ କୃତଂ ।
ଉଦ୍ଧୃତାସି ବରାହେଣ କୃଷ୍ଣେନ ଶତବାହୁନା ।
ନସ୍ୟଃ କୋଟ୍ୟର୍ଦ୍ଧ ତୀର୍ଥାନି ବା ଯତବ୍ରଜେତ୍ ॥
ଦିବି ଭୁବ୍ୟନ୍ତରୀକ୍ଷେଷୁ ତାନି ତେ ସନ୍ତି ଜାହ୍ନବୀ ।
ଗଙ୍ଗାଦ୍ୱାରେ ପ୍ରୟାଗେ ବା ଗଙ୍ଗାସାଗର ସଙ୍ଗମେ ॥
ସର୍ବତ୍ର ସୁଲଭା ଗଙ୍ଗା ତ୍ରିଷୁ ସ୍ଥାନେଷୁ ଦୁର୍ଲ୍ଲଭା ।
ଆଦ୍ୟା ଗୋଦାବରୀ ଗଙ୍ଗା ଦ୍ୱିତୀୟା ଚ ପୁନଃପୁନଃ ॥
ତୃତୀୟା କଥିତା ରେବା ଚତୁର୍ଥେ ଜାହ୍ନବୀ ସ୍ମୃତା ।
କାବେରୀ ଗୋମତୀ କୃଷ୍ଣା ବ୍ରାହ୍ମୀ ବୈତରଣୀ ତଥା ॥
ବିଷ୍ଣୁ ପାଦାଗ୍ରସମ୍ଭୂତେ ଗଙ୍ଗେ ତ୍ରିପଥଗାମିନି ।
ଧର୍ମବ୍ରତ୍ ବିଖ୍ୟାତେପାପଂ ମେହର ଜାହ୍ନବୀ ।
ପାପୋଽହଂ ପାପକର୍ମାହଂ ପାପାତ୍ମା ପାପସମ୍ଭବଃ ।
ତ୍ରାହି ମାଂ ପୁଣ୍ଡରୀକାକ୍ଷ ସର୍ବପାପ କ୍ଷୟେହରଃ ॥

## ସ୍ନାନ ବିଧି

ଆଚମନଂ କୃତ୍ୱା ଶ୍ରୀ ବିଷ୍ଣୁର୍ବେ ନମଃ ସଦ୍ୟ ଅମୁକେ ମାସି ଅମୁକେ ପକ୍ଷେ ଅମୁକେ ତିଥୌ ଅମୁକେ ଗୋତ୍ରସ୍ୟ ଶ୍ରୀ ଅମୁକେ ଦେବଶର୍ମା ଅମୁକ ବର୍ମା, ଗୁପ୍ତାଃ ଦାସଃ ବା ଶ୍ରୀବିଷ୍ଣୁ ପ୍ରୀତିକାମ ଅଦ୍ୟଗଙ୍ଗାୟାଂ ସ୍ନାନ ମହଂ କରିଷ୍ୟେ । ବ୍ରାହ୍ମଣଶ୍ଚେତ୍ ବିଷ୍ଣୁ ଖେଚରସ୍ତ୍ର ଅଦ୍ୟେ ହେତବ୍ରସ୍ମାତେ । ଇତ୍ୟୁକ୍ତ୍ୱା ମୁଖ ନାସିକା ଚକ୍ଷୁଃ କର୍ଣ୍ଣାଦୀନ କରାଭ୍ୟାମା ଚ୍ଛାଦ୍ୟସ୍ନାୟାତ ।

## ଗଙ୍ଗାକୁ ପ୍ରଣାମ

ସଦ୍ୟ ପାତକସଂହନ୍ତ୍ରୀ ସଦ୍ୟ ଦୁଃଖବିନାଶିନୀ ।
ସୁଖଦା ମୋକ୍ଷଦା ଗଙ୍ଗା ଗାଙ୍ଗେ ଚ ପରମାଗତିଃ ॥

ସ୍ନାନ ସମୟରେ ଗଙ୍ଗାଙ୍କୁ ଆବାହନ କରିବା—

ଓଁ ଗଙ୍ଗେଚ ଯମୁନେଶ୍ଚୈବ ଗୋଦାବରୀ ସରସ୍ୱତୀ ।
ନର୍ମଦେ ସିନ୍ଧୁ କାବେରୀ ଜଲେଽସ୍ମିନ୍ ସନ୍ନିଧିଂ କୁରୁ ।
କୁରୁକ୍ଷେତ୍ର ଗୟା ଗଙ୍ଗା ପ୍ରଭାସ ପୁଷ୍କରାଣିଚ ।
ଏତାନି ପୁଣ୍ୟତୀର୍ଥାନି-ସ୍ନାନକାଲେ ଭବନ୍ତ୍ୱହ ।

ସୂର୍ଯ୍ୟଙ୍କୁ ଅର୍ଘ୍ୟଦେବା ମନ୍ତ୍ର—

ହେ ସୂର୍ଯ୍ୟସହସ୍ରାଂଶୋ ତେଜରାଶେ ଜଗତ୍ପତେ ।
ଅନୁକମ୍ପାୟ ମାଂ ଭକ୍ତ୍ୟା ଗୃହାଣାର୍ଘ୍ୟଂ ନମୋସ୍ତୁତେ ।
ଅନ୍ୟତ୍ର-ନମୋ ବିବସ୍ୱତେ ବ୍ରହ୍ମାନ ଭାସ୍ୱତେ ବିଷ୍ଣୁ ତେଜସେ ।
ଜଗତ ସବିତ୍ରେ ଶୁଚୟେ ସବିତ୍ରେ କର୍ମଦାୟିନେ ।
ଇଦମର୍ଘ୍ୟଂ ଶ୍ରୀ ସୂର୍ଯ୍ୟାୟ ନମଃ ।

ସୂର୍ଯ୍ୟଙ୍କୁ ପ୍ରଣାମ

ନମଃ ସବିତ୍ରେ, ଜଗଦେକଚକ୍ଷୁଷେ ଜଗତ୍ ପ୍ରସୂତିସ୍ଥିତିନାଶହେତବେ
ତ୍ରୟୀମୟାୟତ୍ର ଗୁଣାତ୍ମଧାରିଣେ ବିରଞ୍ଚିନାରାୟଣଶଙ୍କରାତ୍ମନେ ନମଃ
ଜବା କୁସୁମସଙ୍କାଶଂ କାଶ୍ୟପୟଂ ମହାଦ୍ୟୁତଂ ।
ଧ୍ୱାନ୍ତାରିଂ ସର୍ବପାପାଘ୍ନ ପ୍ରଣତୋଽସ୍ମି, ଦିବାକରଂ ॥
ସପ୍ତାଶ୍ୱବାହନଃ ସୂର୍ଯ୍ୟ ବରଦଃ ପଦ ଲାଞ୍ଛନଃ ।
ସର୍ବୋତେଜୋମାୟୁ ଦେବଃ ସୂର୍ଯ୍ୟଦେବ୍ୟା, କଗ୍ରହଃ ସଦା ॥

ଅଶ୍ୱତ୍ଥ ବୃକ୍ଷରେ ଜଳଦେବା ମନ୍ତ୍ର—

ଓଁ ଚକ୍ଷୁସ୍ପନ୍ଦଂ ଭୁଜସ୍ପନ୍ଦଂ ତଥା ଦୁଃସ୍ୱପ୍ନ ଦର୍ଶନଂ
ଶତ୍ରୁଣାଞ୍ଚ ଶମୁଶ୍ଚନମଥସ୍ଥଂ ଶମୟ ଶ୍ଚମେ ।
ଅଶ୍ୱତ୍ଥରୂପୀ ଭଗବାନ ପ୍ରିୟତାଂ ମେ ଜନାର୍ଦ୍ଦନ ।

॥ ସମାପ୍ତ ॥

॥ ବିଜ୍ଞାପନ ॥

ଏଠାରେ ସମସ୍ତ ପ୍ରକାର ଓଡ଼ିଆ, ହିନ୍ଦି, ବଙ୍ଗଳା,
ସ୍କୁଲ, କଲେଜ ଓ ସମସ୍ତ ପ୍ରକାର ଧର୍ମ ସମ୍ବନ୍ଧୀୟ
ପୁସ୍ତକ ପାଇଁ ଅନୁସନ୍ଧାନ କରନ୍ତୁ ।



॥ ଠିକଣା ॥

**ରାଉରକେଲା ପୁସ୍ତକ ଭଣ୍ଡାର**

ଟାଉନ ହାଇସ୍କୁଲ ନକଟ, ଡେଲିମାର୍କେଟ

ରାଉରକେଲା - ୭୬୯୦୦୧